# ଅଜବ ସପନ

ଗୀତା ତ୍ରିପାଠୀ





# ଅଜବ ସପନ

(ଶିଶୁ କବିତା ସଂକଳନ)

ଲେଖିକା :
**ଗୀତା ତ୍ରିପାଠୀ**
ସି - ୨୪, କୋଏଲ ନଗର
ରାଉରକେଲା-୧୪
ଫୋନ୍ - ୯୪୩୯୬୬୪୯୦୦

ପ୍ରଥମ ପ୍ରକାଶ : ୨୦୦୫
ଦ୍ୱିତୀୟ ପ୍ରକାଶ : ୨୦୧୪

ପ୍ରକାଶକ :
**ସମର୍ଥା ପବ୍ଲିକେଶନ୍**
ଭୁବନେଶ୍ୱର - ୧୪

ଅକ୍ଷରସଜ୍ଜା ଓ ମୁଦ୍ରଣ :
**ଶ୍ରଦ୍ଧାଞ୍ଜଳି**
ରାମେଶ୍ୱର ପାଟଣା, ଭୁବନେଶ୍ୱର

ପ୍ରଚ୍ଛଦ
**ଶ୍ୱେତା ମହାପାତ୍ର**

ଅଳଙ୍କରଣ
**ମଧୁମିତା**

ମୂଲ୍ୟ : ଚାଳିଶ ଟଙ୍କା ମାତ୍ର

# AJABA SAPAN

(Poems for Children)

**Author :**
**Gita Tripathy**
C-24, Koel Nagar
Rourkela - 14
Mob.- 9439664900

**First Edition :** 2005
**First Edition :** 2014

**Published by :**
**Samartha Publication**
Bhubaneswar-14

Page Layout & Printed at
**Shradhanjali**
Rameswarpatana,
Bhubaneswar

Cover Design :
**Shweta Mohapatra**

Inner Art
**Madhumita**

**Price :** ₹ 40/-

## ଉତ୍ସର୍ଗ

ମୋ ନିରସ ମନକୁ ସରସ କରିଥିବା
ଶ୍ୱେତା ଓ ସୌମ୍ୟ ହାତରେ

# ସୂଚୀପତ୍ର

# ଅଜବ ସପନ



ଶୋଇପଡି ଦିନେ ଦେଖିଲି ସପନ
ହାତୀ ଉଡୁଛନ୍ତି ଆକାଶେ ।
ବାଘ, ଭାଲୁ ଦୁହେଁ ଜଗି ବସିଛନ୍ତି
ବୋଲ ମୋ କରିବା ସକାଶେ ।
ଗଛମାନେ ସବୁ କଥା କହୁଛନ୍ତି
ଠିଆ ହୋଇଯାଇ ଆଗରେ ।
ଆକାଶର ରଂଗ ସବୁଜ ହୋଇଛି
ଦିଶୁ ନାହିଁ କିଛି ବାଗ ରେ ।
ମାଛ ମାନଙ୍କର ପାଦ କଅଁଳିଛି
ଆସନ୍ତି ଦଉଡି ଦଉଡି ।
ବିଲେଇ ମାନଙ୍କୁ ମୂଷା ଦଳ ମିଶି
ନେଇ ଯାଉଛନ୍ତି ଘଉଡି ।



ଗଧମାନେ ସବୁ ଗୀତ ଗାଉଛନ୍ତି
କଳା କୋଇଲିର ସୁରରେ ।
ବୁଢା ଛେଳି ମାନେ ଦାଢି କାଟୁଛନ୍ତି
ହାତେ ଧରି ନୂଆ କ୍ଷୁର ରେ ।
ମାଟିର ବରନ ବଦଳି ଯାଇକି
ହୋଇତ ଯାଇଛି ନେଳିଆ ।
ପାଣି ପିଇବାକୁ ଯାଇ ମୁଁ ଦେଖିଲି
ରଂଗ ତା ନିପଟ କାଳିଆ ।
ଆସିଯିବା ପାଇଁ ସେଇ ରାଇଜରୁ
ଦିଶିଲାନି ମତେ ବାଟଟା ।
ନିଦରୁ ଉଠାଇ ଜେଜେମା କହିଲେ
ସକାଳ ହେଲାଣି ଆଠଟା ।

# ଚଗଲା ଟୁକ୍‌ଲା



ନାଆଁଟି ତାହାର ଟୁକ୍‌ଲା
ଅଟେ ସିଏ ଭାରି ଚଗଲା ।
'ପାଠ ପଢ' ତାକୁ କହିଲେ
ଜବାବ ଦିଏ ସେ ପହିଲେ ।
କହେ ଆଗ ଦିଅ ଉତ୍ତର
ପିତା କିଆଁ ନିମ ପତର ।
ଜିଆ କିଆଁ ମାଟି ଖାଉଛି
କୁହୁଡି କୁଆଡେ ଯାଉଛି ।
କହିଦିଅ ମାଆ କାହିଁକି
ପୂଜା କର ତୁମେ ସାଇଁଙ୍କି ।
ଶୁଆ, ଶାରୀ ଯଦି ଉଡିବେ
ପିଲାଏ କାହିଁକି ପଢିବେ ?
ନ ଖେଳି କିଆଁ ମୁଁ ପଢିବି
କାହିଁକି ଗଛ ନ ଚଢିବି ?
ପାଠଶାଳା କିଏ କରିଲା
ପିଲାଙ୍କ ମଉଜ ସାରିଲା ।



'ଅ' କିଆଁ ଥାଏ ଆଗରେ
ନ ରହିକି 'ହ' ସାଙ୍ଗରେ ।
ମାଆ ନେଲେ ତାକୁ କୋଳେଇ
ବୁଝାଇ କହିଲେ ଖେଳେଇ ।
ପଢିବୁ ଯଦି ତୁ ବହି ରେ
ଉତ୍ତର ପାଇବୁ ତହିଁରେ ।
ପାଠ ଯଦି ତୁହି ପଢିବୁ
ସୁନାର ଭାରତ ଗଢିବୁ ।
ପାରିବେନି କେହି ଠକେଇ
କହିଲେ ଆଖିକୁ ଜକେଇ ।
ମାଆଙ୍କ ଲୁହ ଯେ ଝରିଲା
କୁନି ଓଠ ତାର ଥରିଲା ।
କହିଲା 'ମାଆ ଗୋ ପଢିବି
ଆଗକୁ ଆଗକୁ ବଢିବି' ।



# କି କାରଣେ

ବରଗଛ ମୂଳେ ଠିଆ ହୋଇ ପଡ଼ି
ଦେଖିଲି ଗଛଟି ବିରାଟ
କୁନି ଫଳ ସବୁ ଅଗରେ ଫଳିଛି
ସତେ କି ନାଲିଆ ତରାଟ ।
ବାହୁନିକି ମୁହିଁ କହିଲି 'ପ୍ରଭୁ ହେ
ବୁଦ୍ଧି ନାହିଁ ତୁମ ମଥାରେ
ଟାଣୁଆ ଡାଳରେ ଛୋଟ ଫଳ ଦିଅ
ବଡ଼ ଫଳ ଦିଅ ଲତାରେ ।
କଖାରୁ ଦେଖତ ଫଳୁଅଛି କେତେ
ନିହାତି ନହକା ଗଛରେ
ବୁଝି ମୁଁ ପାରୁନି କହ ଆହେ ସାଇଁ
କି କାରଣ ଏହା ପଛରେ' ।
ଏତିକି ବେଳକୁ ବର ଫଳଟିଏ
ପଡ଼ିଲା ଉପରୁ ମୁଣ୍ଡରେ
ଅବାକ ହୋଇକି ଚାହିଁ ମୁଁ ରହିଲି
କଥା ରହିଗଲା ତୁଣ୍ଡରେ ।
ଉତ୍ତର ମତେ ତ ମିଳିଗଲା ଆଉ
ଜ୍ଞାନ ହେଇଗଲା ଉଦୟ
କହିଲି 'ଦିଅଁ ହେ ଦୋଷ କ୍ଷମା କରି
ହୁଅ ମୋ ଉପରେ ସଦୟ' ।

# କାଗଜ ଡଙ୍ଗା



ଚିଟାଉ ଲେଖିକି କରିଲି ଡଙ୍ଗା
ଉପରେ ଖୋଷିଲି ବାନା ତିରଙ୍ଗା ।
ଚାଳରୁ ପଡିଲା ବରଷା ପାଣି
ଭସାଇ ଦେଲି ମୁଁ ଡଙ୍ଗାଟି ଆଣି ।
କହିଲି ଡଙ୍ଗା ତୁ ଯାଆରେ ଭାସି
ଛାଡୁଛି ପାଣିରେ ତତେ ମୁଁ ହସି ।
ଗୋଳିଆ ପାଣିରେ ଭାସି ତୁ ଯିବୁ
ବୁଡି ନ ଯାଇକି ସେମିତି ଥିବୁ ।





ସରୁ ଧାର ଯାଇ ମିଳିବ୍ ନାଳେ
ନାଚି ନାଚି ଯିବୁ ତରଙ୍ଗ ତାଳେ ।
ନାଳ ପରେ ଯାଇ ଭେଟିବୁ ନଈ
ସୁଅ ନେବ ତତେ ସାଥିରେ ବୋହି ।
ନଈ ପାର ଯେବେ ହୋଇ ତୁ ଯିବୁ
ନୀଳ ସାଗରର ବୁକୁରେ ଥିବୁ ।
ସାଗର ସେପାରି ନୂତନ ଦେଶ
ସେଠା ପିଲାଙ୍କର ସୁନେଲୀ କେଶ ।
ଧରି ନେଇ ତତେ ଖୋଲିବେ ଯେବେ
ଚିଠି ପଢି ଖୁସି ହୋଇବେ ସେବେ ।

# ଗୁଚିତାଣ୍ଟୁ ଖେଳ

ଟୁନା ମୁନା ଦିହେଁ ଖେଳି ଯାଇଥିଲେ
ଅଜା ଯେବେ ଘରେ ପଶିଲେ
ଖେଳରୁ ଆସିକି ଗୋଡ ଧୋଇ ଦିହେଁ
ଅଜାଙ୍କ ପାଖରେ ବସିଲେ ।
ପଚାରିଲେ ଅଜା "ଖରାବେଳଟାରେ
କି ଖେଳ ଖେଳୁଛ କୁହତ"
"ବ୍ୟାଟ୍ ବଲ୍ ଧରି କ୍ରିକେଟ୍ ଖେଳୁଛୁ
ବୁଝିବନି ତୁମେ ରୁହତ ।



ବିଦେଶୀ ମାନଙ୍କ ଖେଳ ସେ ଅଟଇ
କାହିଁକି ପଚାର ଆମକୁ
ଯେତେ ବୁଝାଇଲେ ଧରି ପାରିବନି
ଭଜ ଦିଅଁଙ୍କର ନାମକୁ ।"
ହସି ହସି ଅଜା କହିଲେ ନାତିଙ୍କୁ
"ବିଦେଶୀ କାହାକୁ କହୁଚ
ନିଜ ଦେଶ କଥା କିଛି ତ ଜାଣୁନ
ଏ ଦେଶରେ ଯାହା ରହୁଛ ।



ଗୁଚିତାଣ୍ଡୁ ଖେଳ    କେବେଠାରୁ ଅଛି
ଏଇ ଦେଶ ଏଇ ଗାଆଁରେ
ବିଦେଶୀ ମଣିଷ    କ୍ରିକେଟ କହିକି
ଦେଇ ଦେଲେ ନୂଆ ନାଆଁ ରେ ।
ଗାତଟିଏ କରି    ଏ ଖେଳ ଖେଳିବ
ପଇସା ଲୋଡା ତ ନାହିଁରେ
ବିନା ଖରଚରେ    ଏମିତିଆ ଖେଳ
ପାଇବେନି ଖୋଜି କାହିଁରେ ।

ଏଇ ଖେଳ ପାଇଁ    ଲୋଡା ହୋଇଥାଏ
ବାଡି ଦୁଇ ଖଣ୍ଡ ମାତର
ଦେଶୀ ଖେଳ ବୋଲି    ମୁହଁକୁ ମୋଡୁଛ
କରୁନ ଏହାକୁ ଖାତର ।”
ଟୁନା ମୁନା ଦୁହେଁ    ସବୁ ଶୁଣିସାରି
କହିଲେ “ଜାଣିଥା ଅଜା ହେ
ଗୁଚିତାଣ୍ଡୁ ଖେଳ    ଏଣିକି ଖେଳିବୁ
ଜାଣିଲୁଣି ତାର ମଜା ହେ ।”

# ଆଳୁ ଓ ଦେଶୀଆଳୁ



ଆଳୁ ଦେଶୀଆଳୁ ଲାଗିଲେ କଳି
ଆଳୁ ଦେହ ଗଲା ରାଗରେ ଜଳି ।
କହିଲା ଦେଶୀକୁ 'ହଇରେ ଦେଶୀ
ହେଇଚି କଳା ତୋ ଦେହରେ ଲେସି ।
ଦେହ ମୋର ଦେଖ୍ ଚିକ୍କଣ କେତେ
ଖାଏ ତତେ କିଏ କହିଲୁ ସତେ ।
ଜାଣିଛୁ କେଉଁଠୁ ଅଛି ମୁଁ ଆସି
ଅଲଗା ତୋହର ମୋହର ରାଶି ।
ଫିରିଙ୍ଗି ସାଥିରେ ଆଣିଲେ ମତେ
ମୁହିଁ ଥିଲେ କିଏ ପଚାରେ ତତେ ।
ବିଲାତି ଆଳୁ ମୁଁ ବହୁତ ଧଳା
ଆବୁଡା ଖାବୁଡା ଦେହ ତୋ କଳା ।
ନଇନିତାଲ ମୋ ମାଉସୀ ଘର
ପୋଡି, ଛାଣି ମୋତେ ଖାଆନ୍ତି ନର'



ସବୁ ଶୁଣି ସାରି କହିଲା ଦେଶୀ
'ବାଢେ କଥା କହୁ ତୁହିତ ବେଶୀ ।
କାହିଁକି ଆସିଲୁ ଦେଶ ତୋ ଛାଡି
ପଡିଛୁ ଏଠାରେ ମୁହଁକୁ ମାଡି ।
ବଡ ଦେଉଳେ ତୋ ପ୍ରବେଶ ନାହିଁ
ବଡ ବଡ କଥା କହୁଛୁ କାହିଁ ।
ମାନୁଚି ଦେହ ମୋ କାଳିଆ ଅଟେ
ହବିଷରେ ତୋର ନାଆଁଟି କଟେ ।
କାଳିଆ ହେଲେ ମୁଁ କଅଣ ହେବ
ଘାଣ୍ଟ ପାଇଁ ତତେ କିଏ ସେ ନେବ ।
ଚେକି ଚେକି କରି କରିଲେ ଭଜା
ତାହାଲେ ଜାଣିବୁ ମୋହରି ମଜା ।
ସଫା ରଙ୍ଗ ବୋଲି ପକାଉ ରଡି
ସୁନ୍ଦର ବୋଲି ତୁ ବସିଛୁ ଅଡି ।
କେଉଁ କାମକୁ ସେ ସଫେଦ ରଂଗ
ଭଲ ନୁହେଁ ଯଦି ଗୁଣ ଓ ଢଙ୍ଗ ।

# ଓଲଟ ପାଲଟ

ପାଠ ପଢ଼ି ପଢ଼ି ଚିଟା ଲାଗିଗଲା
ଟୁକ୍‌ଲା ଚିଡ଼ିଲା ମନରେ
ଅଜବ ଖିଆଲ ଆସିଗଲା ଯେବେ
ବୁଲୁଥିଲା ଉପବନରେ ।
ବଡ ଲୋକ ସବୁ ପିଲା ପାଲଟନ୍ତେ
ପାଠ ବହି ଦେଖି କାନ୍ଦନ୍ତେ
ସାନ ପିଲାମାନେ କାମକୁ ଯିବାକୁ
ଫାଇଲ୍ ପତର ବାନ୍ଧନ୍ତେ ।
ବାପା, ବୋଉ ଆଉ କକେଇ, ଖୁଡୀଙ୍କ
ଟୁକ୍‌ଲା ମୁରବୀ ସାଜନ୍ତା
ଚଉକିରେ ବସି ଗଣିତ କଷାନ୍ତା
ଛଅଟା ଯେମିତି ବାଜନ୍ତା ।



ବାପା ରଖିଥିବା ଛାଟକୁ ଟୁକ୍‌ଲା
ଫୋପାଡି ଦିଅନ୍ତା ଧାଇଁକି
'ସେନେହ କରିକି ପାଠ ପଢାଇବି'
ବାପାଙ୍କୁ କୁହନ୍ତା ଯାଇକି ।
ବାଡି ଫିଙ୍ଗା ଦେଖି ଖୁସି ହେଇଯାଇ
ବାପା ଟାଉଟାଉ ପଡନ୍ତେ
ପଢାବହି ସାଥେ ମଜି ଯାଇ ବାପା
ନିଜ ଭବିଷ୍ୟତ ଗଢନ୍ତେ ।
ପରୀକ୍ଷା ପାଇଁକି ନିଦରୁ ଉଠାଇ
ବାପାଙ୍କୁ ଜଗି ସେ ବସନ୍ତା
'ବଡ ପାଟି କରି ପଣିକିଆ ଗାଅ'
କହି ସେ ମୁରୁକି ହସନ୍ତା ।
ବାପାଙ୍କ ଡାକରେ ଟୁକ୍‌ଲା ଚାହିଁଲା
ଭାବନା ରହିଲା ଅଧାରେ
ବାପା କହୁଥିଲେ 'ପାଠ ପଢା ବେଳେ
କାହିଁକି ବୁଲୁଛୁ ପଦାରେ' ।



# ଟୁକ୍‌ଲାର ସପନ

ବଗିଚାରେ ଦିନେ ବସିଥିଲି ଯେବେ
ଆକାଶେ ଦେଖିଲି ଥାଳିଆ
ଘୁଉଁ ଘୁଉଁ ହୋଇ ଉଡୁଥିଲା ସିଏ
ରଂଗ ଥିଲା ତାର କାଳିଆ ।୧।
ମାଟିର ଉପରେ ରହିଲା ଉତାରୁ
ବାହାରିଲା ତହୁଁ ପିଲାଟେ
ହାତ ହଲାଇକି ପାଖକୁ ଆସିଲା
କହିଲା ତା ନାଆଁ 'ଜୁଲାଟେ' ।୨।
ନବା ପାଇଁ ମତେ ତାହାରି ସାଥିରେ
ଆସିଛି ଅଲଗା ଗ୍ରହରୁ
ଆକାଶୁ ଚାହିଁକି ବାଟ ମୋ ଜଗିଛି
ଆଜି ସେ ସକାଳ ପହରୁ ।୩।



କହିଲା 'ତତେ ମୁଁ ସାଙ୍ଗେ ନେଇଯିବି
ବସିଗଲେ ଏଇ ଯାନରେ
ନିମିଷେ ଉଡିବା, ଶବଦ ପାଇଁକି
ହାତ ଦେଇଥିବୁ କାନରେ ।୪।
ବୋଲ ତା ମାନିକି ଥାଳିରେ ବସିଲି
ଚାଲିଗଲି ତା' ସାଥିରେ
ନୂତନ ଗ୍ରହରେ ନୂଆ ପିଲା ଭେଟି
ଖେଳରେ ଗଲି ମୁଁ ମାତିରେ ।୫।
ଶୁଣିଲି ସେଠାରେ ପାଠ ପଢା ନାହିଁ
ନାହିଁ କାହିଁ ଚାଟଶାଳୀଟେ
କହିଥିଲି 'ମୁହିଁ ଯିବିନି ଏଠାରୁ'
ହାତେ ମାରିଦେଇ ତାଳିଟେ ।୬।
ମାଆଙ୍କ ଡାକରେ ନିଦ ଭାଙ୍ଗିଗଲା
ଜାଣିଲି ଏଇଟା ସପନ
କହୁଥିଲେ ମାଆ ଉ'ଠ୍ ଟୁକ୍‌ଲା
ଉଇଁଲେଣି ପରା ତପନ ।୭।

# ବିଲୁଆ ନନା



ଖରା ହେଉଛି ବର୍ଷା ହେଉଛି
ବିଲୁଆ ନନା ବାହା ହେଉଛି
ମଥାରେ ତାର ଚନ୍ଦନ ଟିପା
ହଳଦୀ ବଟା ଦେହରେ ଲିପା ।
ବିଲୁଆ ନନା ପିନ୍ଧିଛି ପାଟ
ଠେକୁଆ ଦଳ କରନ୍ତି ନାଟ ।
ବିଲୁଆ ନନା ବହୁତ ଖୁସି
ସାଥିରେ ଅଛି ଟୁଡକୁ ମୂଷି ।
ମାର୍କୁଣ୍ଡି ସାଜି ବସିଛି ପାଶେ
ନୂଆ ପୋଷାକ ପାଇବା ଆଶେ ।

ବିଲେଇ ନାନୀ ଗାଉଛି ଗୀତ
ବଣ-ଭୁଆକୁ କରିଛି ମିତ ।
କାଉ କୋଇଲି ଆସିଲେ ଉଡି
ସାଥିରେ ଅଛି କପୋତୀ ଖୁଡୀ ।
ପାତି ମାଙ୍କଡ ବସିଛି ଡାଳେ
ହାର ପିନ୍ଧିକି ବେକରେ ମାଳେ ।

ବିଲୁଆ ନନା ଭାରି ଯେ ଚାଲୁ
କନିଆ ଦାନ କରିବ ଭାଲୁ ।
ହାତୀ ମଉସା ଫୁଙ୍କିବ ତୂରୀ
ଖାଇବ ଭୋଜି ପେଟକୁ ଭରି ।
ସଙ୍ଗାତ ହନୁ ମନରେ ଆଶା
ଭୋଜି ମିଳିବ ଆଜି ତ ଖାସା ।
ବାଘ ମାମୁ ଯେ କରିଲା ରଡି
ବେଳ ଯାଉଛି ହାତରୁ ଗଡି ।



କହିଲା ବେଗେ କନିଆ ଆଣ
ଘଡଘଡି ଯେ ମାରୁଛି ବାଣ ।
ବାଘ ରଡିରେ ଛାନିଆ ହେଇ
ହରିଣ ଆସେ କନିଆ ନେଇ ।
ହାତକୁ ହାତ ଦେଲେରେ ଛନ୍ଦି
ବିଲୁଆ ନନା ହୋଇଲା ବନ୍ଦୀ ।
ଶଶୁର ଘର କନିଆ ଗଲା
ବିଲୁଆ ନନା ସାଥିରେ ଥିଲା ।

# ପ୍ରଶ୍ନମାଳା

ବୁନ୍ଦା ବୁନ୍ଦା ପାଣି ବାଦଲ ହୋଇକି
କେମିତି ଆକାଶେ ଉଡୁଛି
ଶୀତଋତୁ ସାରା ଶୁଖିଲା ପତର
କାହିଁକି ଗଛରୁ ଝଡୁଛି ।
କୁନି ମଂଜିଟିଏ କେଉଁ କୁହୁକରେ
ମାଟିକୁ ଫଟାଇ ବଢୁଛି
କାହାଠାରୁ ଶିଖି ବାନର ଛୁଆଟି
ଉଞ୍ଚ ବରଗଛ ଚଢୁଛି ।



ଜାତିଜାତି ଫୁଲ ଦେଖି କି ଲାଗଇ
କେଉଁଠୁ ଏ ରଂଗ ଆସୁଛି
ଶୁଖିଲା ଜମିରେ ପହିଲି ବରଷା
କାହିଁ ପାଇଁ ଏତେ ବାସୁଛି ।
ଚଢେଇ ଛୁଆର କେତେ ଅବା ବଳ
କେମିତି ଅଣ୍ଡାରୁ ଫୁଟୁଛି
କେଉଁ କାରଣରୁ ସୁନୀଳ ସାଗର
ଏ ଭଳି ଲହଡି ପିଟୁଛି ।

ମେଘ ଦେଖି ନାଚ ପାଇଁକି ମୟୂର
କିଆଁ ମନେ ଆଶା ପୋଷୁଛି
ଏଇଲେ ଜନମି କଅଁଳା ଶିଶୁଟି
କି କାରଣେ ନିଦେ ହସୁଛି ।
ବାଳୁତ ଛୁଆଟି ଧୀରେ ଧୀରେ ବଢ଼ି
ଭାଷାକୁ କିଭଳି କହୁଛି ।
ଜନମ ହେଉଣୁ କ୍ଷୀର ଖାଇବାକୁ
କେମିତି ବାଛୁରୀ ଯାଉଛି ।



ଫଗୁଣ ଆସିଲେ ବଉଳର ପେଡ଼ୁା
ଆମ୍ବ ଡାଳେ କିଏ ଭରୁଛି ।
ପାଚିଲା ପଣସ ବାସେ ତାର କିଆଁ
ଘର ମହ ମହ କରୁଛି ।
କେତେ କେତେ କଥା କାହ୍ନୁର ମନରେ
ରହି ରହି କରି ଖେଳୁଛି ।
କେଉଁ ବହି ପଢ଼ି ଉତ୍ତର ପାଇବ
ମନେ ମନେ ସିଏ ଭାବୁଛି ।

# ମାମୁ ଘର



ଭଲ ଲାଗେ ମତେ ମାମୁଙ୍କ ଘର
ନଥାଏ ସେଠାରେ ବାପାଙ୍କ ଡର ।
ମାମୁ ଯାଚି ମତେ ଦିଅନ୍ତି ଟଙ୍କା
ଦଣ୍ଡେ ନ ଦେଖିଲେ ପକାନ୍ତି ଡକା ।
କହନ୍ତି ମୁଁ ତାଙ୍କ ଗେହ୍ଲା ଭଣଜା
ଆଣନ୍ତି ମୋ ପାଇଁ ବଜାରୁ ଖଜା ।
ମାମୁଙ୍କ ସାଥିରେ ଯାଏ ମୁଁ ହାଟ
ଗଲାବେଳେ ସିଏ ଚିହ୍ନାନ୍ତି ବାଟ ।
ଆଈ ମତେ କେତେ ଶୁଣାନ୍ତି ଗପ
ଅଜା ତ କରନ୍ତି ମୋ ନାମ ଜପ ।
ମାଇଁ ମୋ ରାନ୍ଧନ୍ତି ଭଲିକିଭଲି
ତାଙ୍କ ପାଖେ ମୋର ଯେତିକି ଅଳି ।

ମାମୁ ଘର ପାଶେ ବହୁଛି ନଈ
ତହିଁରେ ପହଁରେ ନିଇତି ଯାଇ ।
ଶଗଡ ଦଣ୍ଡାକୁ ଧରି ମୁଁ ଝୁଲେ
ଆମ୍ବ ତୋଟା ଯାକ ଖୁସିରେ ବୁଲେ ।
ଫେରେ ଯେବେ ମୁହିଁ କାନ୍ଦନ୍ତି ଆଈ
"କହନ୍ତି ତୋ ବାଟ ରହିବି ଚାହିଁ" ।
କୋଳରେ ପୂରାଇ କୁହନ୍ତି ଅଜା
"ରହିଯାଆ ଧନ ଆଜି ତୁ ନଯା" ।
ମଥାକୁ ଆଉଁଷି କୁହନ୍ତି ମାମୁ
"ବଇଶାଖେ ଆସି ଦେଖିବୁ ଝାମୁ" ।
ଘରକୁ ଫେରି ମୋ ଲାଗେନି ମନ
ମାଆ କହେ "ପୁଣି ଯିବାରେ ଧନ" ।

# ବୋଉର ପୂଜା

ସୋମବାର ଦିନ ଶିବ ମନ୍ଦିରରେ
ବୋଉ ଭୋଗ କରେ ନଡିଆ
ଫୁଙ୍ଗୁଳା ପାଦରେ ଚାଲି ଚାଲି ଯାଏ
ପାର ହୋଇ ବଡ ପଡିଆ ।
ମଙ୍ଗଳ ବାରରେ ପୂଜେ ହନୁମାନ
ଫୁଲ, ଫଳ ସାଥେ ନେଇକି
ଓଢଣା ଟାଣିକି ଜୁହାର କରେ ସେ
ଛବା ମାଳ ତାଙ୍କୁ ଦେଇକି ।



ବୁଧବାର ଦିନ ବୁଧେଇ ଓଷାକୁ
ବୋଉ କରେ ମନ ଲଗାଇ
"ଉପାସ କାହିଁକି ଏତିକି କରୁଛୁ"
କହି ଦେଲେ ଭାରି ରାଗଇ ।
ଗୁରୁବାର ଦିନ ମହାଲକ୍ଷ୍ମୀ ପୂଜା
କରେ ସେ ସିନ୍ଦୂର ନାଇକି
ଭୋଗ କରିଥାଏ ଉଖୁଡା, କଦଳୀ
ପୁରାଣର କଥା ଗାଇକି ।

ଶୁକ୍ରବାର ଦିନ ଗୁଡ ଚଣା ଦେଇ
ଡାକେ ସେ ସନ୍ତୋଷୀ ମାଆଙ୍କୁ
କହେ 'ଦୟାମୟୀ ତୁମେ ତ ଭରସା
ଦୁଃଖ ବା କହିବି କାହାକୁ' ।





ଶନିବାର ଦିନ ଶନି ପୂଜେ ସିଏ
ଖୁଆଏ କାଳିଆ କୁକୁର
ତେଲ ଦୀପ ଜାଳି ଠାକୁରଙ୍କୁ କହେ
ସାଇତା କଥା ତା ବୁକୁର ।
ରବିବାର ଦିନ ହାତ ଯୋଡି ଦେଇ
ପୂଜେ ସେ ସକାଳ ସୂରୁଯ
'କୁଶଳେ ରଖିବ ପରିବାର ମୋର'
କହେ ସେ ପକାଇ ମୁରୁଜ ।

# ଆ' ଜହ୍ନମାମୁ



ଆ' ଜହ୍ନମାମୁ ସରଗ ଶଶୀ
ମୋ କାହ୍ନୁ ହାତରେ ପଅଡ ଖସି ।
ସକାଳ ପହରୁ ଧରିଛି ରାହା
ଆସିକି ହୁଅ ତୁ ତାହାରି ସାହା ।
କାହ୍ନୁ ମୋ ହେଉଛି ଅଝଟ ଭାରି
ଘରକାମ ମୁହିଁ ପାରୁନି ସାରି ।
ଆକାଶୁ ଖସି ତୁ ପଡିଲେ ହାତେ
କହ୍ନେଇ ଖେଳିବ ତୋହରି ସାଥେ ।





ଖୁସି ହେବ ଆଉ କାନ୍ଦିବ ନାହିଁ
ରହିଥିବ ତୋର ମୁହଁକୁ ଚାହିଁ ।
ସର ଓ ଲବଣୀ ଖୁଆଇ ତତେ
ଗେଲ ସେ କରିବ କାହିଁରେ କେତେ ।
ତୋହରି ପାଖରେ କାହ୍ନୁକୁ ଛାଡି
ଘରର ପାଇଟି ଦେବି ମୁଁ ସାରି ।
କାହ୍ନୁକୁ ହସି ତୁ ହସାଉ ଥିବୁ
ଶୋଇଗଲେ ସିଏ ଆକାଶେ ଯିବୁ ।

# କୁନି ଭାଇ

ଘରେ ଅଛି ମୋର ଛୋଟିଆ ଭାଇ
ପଛେ ପଛେ ଘୂରେ ସତେ ବା ଛାଇ ।
ଡଉଲ ଚେହେରା ତାହାର ସତେ
ସବୁଠୁ ସୁନ୍ଦର ଲାଗଇ ମତେ ।
କୁଣିଆ ଦେଖିଲେ ଚିହୁରି ଛାଡେ
ହାତ ସେ ବଢାଏ ମୋହରି ଆଡେ ।।





କୋଳକୁ ଆସିଲେ ଦିଅଇ ହସି
ଆମ ଘରେ ସିଏ ସରଗ ଶଶୀ ।
ପିଠିରେ ପକାଇ କରେ ମୁଁ ଲାଡ
ଖୁସି ହୁଏ ସିଏ ଦେଖିଲେ କାଉ ।
ନାନୀ ବୋଲି ମତେ ଡାକିବ କେବେ
କୁରୁଳି ଉଠୁଛି ଭାବି ମୁଁ ଏବେ ।

# ଅଗଷ୍ଟ ପନ୍ଦର



ଅଗଷ୍ଟ ପନ୍ଦର ଦିବସ ଆଜି
ଆକାଶେ ଉଠଇ ତିରଂଗା ସାଜି ।
ରଂଗ ତା ନାରଙ୍ଗୀ, ଶାଗୁଆ, ସାଦା
ଦେଖିଲେ ମନରେ ଆସଇ ଶ୍ରଦ୍ଧା ।
ଆସ 'ଜନଗଣ' ଗାଇବା ଗୀତ
ସାରା ଦେଶବାସୀ ବସିବା ମିତ ।
ଶହୀଦମାନଙ୍କୁ କରି ସ୍ମରଣ
ଫୁଲରେ ସାଜିବା ତାଙ୍କ ଚରଣ ।
ବାପୁଜୀ ଆମର ଜାତିର ପିତା
ସତପଥେ ଚାଲି ଜଗତ ଜିତା ।





ତାଙ୍କ ଲାଗି ଦେଶ ଉଠିଲା ମାତି
ଦେଶବାସୀ ହେଲେ ଗୋଟିଏ ଜାତି ।।
ବିନା ରକତରେ ବିଦେଶୀ ଗଲେ
ସ୍ୱାଧୀନ ଦେଶର ଆମେରେ ପିଲେ ।
ଏଇ ଦେଶ ମାଟି, ପାଣି, ପବନ
ଅଟଇ ମୋହର ଜୀବନ ଧନ ।
ଭାରତ ଅଟଇ ମୋହରି ମାଆ
ମୁଁ ତାର ସନ୍ତାନ ତାହାରି ସାହା ।
ଲଢ଼ିବି ତା ପାଇଁ ଜୀବନ ଦେଇ
କହି ମୁଁ ରଖିଲି କଥାଟି ଏଇ ।

# ବରଷା କାଳ

ଧରାକୁ ଆସିଲା ବରଷା କାଳ
ଚାଳରୁ ଖସିଲା ମୁକୁତା ମାଳ ।
ଟୁପୁରୁ ଟୁପୁରୁ ପଡିଲା ପାଣି
ଗୀତ ଗାଏ ଦେଖ ବେଙ୍ଗୁଲୀରାଣୀ ।
ଛତା, ବରଷାତି କିଣିକି ଆଣ
ବରଷା ପାଗରେ ପକୁଡି ଛାଣ ।
ଆକାଶେ କାଳିଆ ବାଦଲ ଠୁଳ
କଦମ୍ବ ଗଛରେ ଫୁଟିଲା ଫୁଲ ।
ଜହ୍ନି ଓ କଲରା ପସରା ହାଟେ
ସାଧବାଣୀ ଚାଲେ ଗହୀର ବାଟେ ।



ଧୂସର ଧରଣୀ ଶାଗୁଆ ଦିଶେ
ଭରା ନଈପାଣି ସାଗରେ ମିଶେ ।
ପଶୁପକ୍ଷୀଯାକ ହୁଅନ୍ତି ଓଦା
ପାଣିରେ ଭାସଇ ପିମ୍ପୁଡି ମନ୍ଦା ।
ମେଘ ଘୋଟିଆସେ ପଡେନି ଖରା
ଗୋଳିଆ ପାଣିରେ ପୋଖରୀ ଭରା ।
ନଈ ବଢି ପାଣି ଆସିବ ମାଡି
ଲୋକେ ଯିବେ ଘର ଦୁଆର ଛାଡି ।
ବରଷାରେ ରୋଗ ହୁଅଇ ଜାତ
ଖାଅ ପିଲେ ତୁମେ ଗରମ ଭାତ ।

# ଟିକି ଚଢ଼େଇ

ଟିକି ଚଢ଼େଇରେ ଟିକି ଚଢ଼େଇ
ରଖିଛି ତୋଲାଗି କୋଳି ଝଡ଼େଇ ।
ନେଇଯା ଆସିକି ବଢ଼ାଇ ଅଣ୍ଟ
ଖୁସିରେ ନାଚିବ ମୋ ଭାଇ 'ନଟ' ।
କିଏ ଦେଲା ତତେ ହଳଦୀରଙ୍ଗ
ଆ' ମୋ ପାଖକୁ ହୋଇବା ସାଙ୍ଗ ।
ଥଣ୍ଟରେ ଟାଣୁ ତୁ ଫୁଲରୁ ମହୁ
ଚିଇଁ ଚିଇଁ ସୁରେ କଥା ତୁ କହୁ ।
ନାଲିଆ ଥଣ୍ଟ ତୋ ଗୋଜିଆ କେତେ
ସୁନ୍ଦର ଲାଗଇ ବହୁତ ମତେ ।



ସରୁ ଲାଞ୍ଜଟିକୁ ହଲାଉ ଥାଉ
ରାତି ଆସିଗଲେ କୁଆଡ଼େ ଯାଉ ।
ଚକ ଚକ କରେ ତୋହରି ପର
ଗହଳି ହେବ ତୁ ଆସିଲେ ଘର ।
ଆଜିଠୁ ହୋଇଯା ମୋହରି ମିତ
ଦିହେଁ ମିଶିଯାଇ ଗାଇବା ଗୀତ ।
ଦିନସାରା ମୁହିଁ ଦେଖିବି ତତେ
ଦୂରଦେଶ କଥା କହିବୁ ମତେ ।
ଉଡ଼ି ଚାଲିଯିବୁ ଆକାଶେ ଯେବେ
ମନ ମାରି ଦେଇ ବସିବି ତେବେ ।

# ପପ୍ପି

ଆମ ଘରେ ଅଛି କୁକୁର ଗୋଟେ
ଗେହ୍ଲା ଭାରି, କଥା ଶୁଣେନି ମୋଟେ ।
ଧଳା ଦେହ ତା'ର କାଳିଆ ନାକ
କାନେଇ ଥାଏ ସେ ମାଆଙ୍କ ଡାକ ।
ଠେକୁଆ ପରି ତା' ଯୋଡିଏ କାନ
ଆଉଁଷି ନ ଦେଲେ କରଇ ମାନ ।
କେହି ନଥିଲେ ସେ ଘରକୁ ଜଗେ
କ୍ଷୀର ପିଏ ସିଏ ନିଇତି ମଗେ ।



ନାଆଁଟି ତାହାର ଅଟଇ ପପ୍ପି
ମୂଷାକୁ ଧରେ ସେ ଲୁଚି ଓ ଛପି ।
ଖୁସି ହୋଇଗଲେ ଆମକୁ ଚାଟେ
ଚୋରଙ୍କୁ ଦେଖିଲେ ଦାନ୍ତରେ କାଟେ ।
ଦୁଇ ଗୋଡେ ଠିଆ ହୋଇ ସେ ଯାଏ
ମୋ ହାତରୁ ନେଇ ମୁଢ଼ୁକୁ ଖାଏ ।
କଣ୍ଢେଇ ଭଳିଆ ତାହାରି ଚାଲି
ତାହା ବିନା ଲାଗେ ଘରଟି ଖାଲି ।
ବାପା ବୋଉଙ୍କର ପ୍ରିୟ ସେ ଅତି
ଆମେ ଘରେ ସିଏ ବିଜୁଳି ବତୀ ।

# ପାଠ

ଜେଜେ ପାଟିକଲେ 'ହଇରେ ନାତି
ଖେଳରେ ଖାଲି ତୁ ଯାଉଛୁ ମାତି
ବହି ଧରି ଆ' ମୋହରି କତି
ଖରାପ ହେଲାଣି ତୋହରି ଗତି ।
ପଢି ପଢାଇବା ଆମର ଜାତି
ପଅଢ କହିଲେ ଯାଉଛୁ ତାତି ।
ଚଗଲାମି ତୁହି କରୁଛୁ ଅତି
ପାଠ ନପଢିଲେ ତୋହରି କ୍ଷତି ।



ବଦଳି କରିଦେ ନିଜର ରୀତି
ପାଠକୁ କରନା ଏମିତି ଇତି ।
ବହି ଧରି ପାଠ ପଢ ତୁ ନିତି
ପଢିଲେ ଯିବୁ ତୁ ଜଗତ ଜିତି ।
ପାଠ ପଢୁଥିଲେ ଦିନ ଓ ରାତି
ସାଥିଙ୍କ ମେଳରେ ବଢିବ ଖ୍ୟାତି
ନ ପଢିଲେ ହେବୁ ମୂରୁଖ ହାତୀ
ପାଠ ପଢି ଫୁଲା ଜେଜେଙ୍କ ଛାତି ।

# ମିକି ମୂଷା



ଟିକି ମୂଷା ମିକି ଚାହାଲୀ ଯାଏନି
କହେ ପଢିବନି ପାଠ
ପଚାରିଲେ କିଏ ଉତ୍ତର ଦିଏ ସେ
ଦୁ'ଇ ଦୁଗୁଣେ ଆଠ ।
ମା ମୂଷା ତାକୁ ପାଖକୁ ଡାକିକି
କହିଲା ଶୁ'ଣ ଧନ
ବୁଦ୍ଧିଆ ମଣିଷ ମାନଙ୍କୁ ଦେଖିକି
ପଢାରେ ଲଗା ତୁ ମନ ।
ବଳ ନ ଥାଇ ବି ବହି ପଢି ପଢି
ଚତୁର ମାନବ ଜାତି
ସରକସେ ସିଏ ସହଜେ ନଚାନ୍ତି
ବାଘ, ଭାଲୁ, ସିଂହ, ହାତୀ ।
ପାଠଶାଳା ଗଲେ ଅକଲ ଆସିବ
ହୋଇବୁ ଚାଲାଖି ଚାଟ
ନିଜେ ଇ ନିଜର ସହାୟ ହୋଇବୁ
ସଫା ଦିଶିଯିବ ବାଟ ।

ଦୂରୁବଳ ବୋଲି ବିଲେଇ, କୁକୁର
ଗୋଡାନ୍ତି ଆମକୁ ନିତି
କହତ ମିକିରେ ଇଏ କି ଜୀବନ
ଡରି ଡରି ଯାଏ ବିତି ।
ସବୁ ଶୁଣି ସାରି ମିକି କହେ ମାଆ
ବୁଝିଗଲି ତୁମ କଥା
ଆଜିଠାରୁ ମୁହିଁ ଚାଟଶାଳୀ ଯିବି
ଖରାପ କରନି ମଥା ।
ବଳୁଆ କିଏ ସେ ଗୋଡାଇଲେ ମତେ
ଦେଇଦେବି ତାକୁ ଧୋକା
ଇଆଡେ ସିଆଡେ ଧାଇଁକି ଲୁଚିବି
ହୋଇଯିବ ସିଏ ବୋକା ।

# ଏକାଳ, ସେକାଳ

ବରଷା ପାଗରେ ନଡିଆ ମୁଢି
ଖାଇବ ଅଙ୍କଲ୍ ଚିପ୍‌ସ୍‌କୁ ଛାଡି ।
ଖରାକୁ ପଖାଳ, କୋଶଳା ଭଜା
ଆଇସ୍‌କ୍ରିମ୍‌ରେ କାହିଁ ସେ ମଜା ?
ଶୀତ ଦିନେ ପିଅ କାଞ୍ଜି ଗରମ
ସୁପ୍ ଲୁଚିଯିବ ପାଇ ସରମ ।
ତତଲା ଭାତକୁ ମାଛ ବେସର
ସାହି ଚିକେନ୍ ତ ହେବ ପାଶୋର ।



ଅଟାରେ ତିଆରି କାକରା ପିଠା
ଅଣ୍ଡାକେକ୍ ଠାରୁ ଆହୁରି ମିଠା ।
ଲେମ୍ବୁ ସରବତ ଦେହକୁ ଭଲ
ପେପ୍‌ସି, ସେ ଖାଲି ମଧୁର ଜଳ ।
ଜେଜେମା ହାତର ହୁଡୁମ୍ବ ଭଜା
ପିଜାରେ ନଥାଏ ତାହାର ମଜା ।
ଖଲି ପତରର ପୁରୁଣା ଭୋଜି
ବଫେରେ କାହିଁ ତା ପାଇବ ଖୋଜି ।

# ଆମ ଅଜା



ଘରକୁ ଆସିଲେ ଆମରି ଅଜା
ଲାଗିଥାଏ ମତେ ବହୁତ ମଜା ।
ଅଜା ଆଣିଥାନ୍ତି ଗାଆଁରୁ ଖଜା
ଖାଇ ପାରନ୍ତିନି ସିଏ ତ ଗଜା ।
ନାଳରେ ବସାନ୍ତି ପୁରୁଣା ବଜା
କୁହନ୍ତି ପାଖକୁ ନ ଯାରେ ନ ଯା ।
ମାଛ ଧରିସାରି କରନ୍ତି ଭଜା
କହନ୍ତି ଖାଇବ ମୋ ନାତି ରଜା ।
ଯାତରାରୁ ଆଣି ଦିଅନ୍ତି ବାଜା
କିଣନ୍ତି ପରିବା ହାଟରୁ ତାଜା ।

ଅଜାତ ଅଟନ୍ତି ଟିକିଏ କୁଜା
ପାକୁଳି କରିକି ଖାଆନ୍ତି ଭୁଜା ।
ଅଜାଙ୍କ ନାକଟି ଅଟଇ ଗୋଜା
ଚାଲିଗଲେ କାହିଁ ପଡଇ ଖୋଜା ।
ରାଗିଗଲେ ସିଏ ଦିଅନ୍ତି ସଜା
କହନ୍ତି ଗାଲରେ ଚାପୁଡା ବଜା ।
ତାଙ୍କ ଲାଗି ଯେବେ ଆଣେ ମୁଁ ପିଜା
କହନ୍ତି ତାକୁ ତୁ ପାଣିରେ ଭିଜା ।
କହେ ମୁଁ ତାହାଙ୍କୁ 'ନ ଯାଅ ଅଜା
ଆମ ଘରେ ରହି ବଗିଚା ସଜା' ।

# ନାନୀ ବାହାଘର

ଆଜି ମୋ ନାନୀର ବାହାଘର
ରୋଷଣୀ ସଜାଇ ଆସେ ବର ।
ଆଗେ ଆସୁଛନ୍ତି ବାଜା ବାଲା
ବରର ଗଳାରେ ଫୁଲ ମାଳା ।
ନାନୀ ପିନ୍ଧିଅଛି ନାଲି ପାଟ
ବାପା ଚାହିଁଛନ୍ତି ବର ବାଟ ।
ନାନୀର ବେକରେ ସୁନାକଣ୍ଠି
ପଡିଯିବ ଆଜି ହାତଗଣ୍ଠି ।



ନାନୀ ମୋ ଦିଶୁଛି ରାଣୀପରି
କିଏ ହେବ କୁହ ତାହାପରି ।
ଘରେ ଆଜି କେତେ କ୍ଷିରୀପିଠା
ପଲାଉ, ପାୟସ, ପୁରୀ, ମିଠା
ଶାଶୁଘର ଯେବେ ଯିବ ନାନୀ
କାନ୍ଦିବି ମୁଁ ତାର ଧରି କାନି ।
ନାନୀ ଚାଲିଗଲେ ଶାଶୁଘର
କିଏ ଦେବ ମତେ କ୍ଷୀର ସର ।

# ଗୋଲାପ କହିଲା ମଲ୍ଲିକି



କହିଲା ଗୋଲାପ ମଲ୍ଲିକୁ ଡାକି
'ଫୁଲଙ୍କ ଭିତରେ ମୁଁ ସୁନାନାକୀ ।
ସକାଳୁ ଦିଶଇ କେଡ ମୋ ତାଜା
ଭଲ ପାଉଥିଲେ ନେହେରୁ ଅଜା ।
ଅଟକି ଦେଖ୍ ମୁଁ ସୁନ୍ଦର କେତେ
ପୋଷାକେ ସଭିଏଁ ଲଗାନ୍ତି ମତେ ।
ଛୋଟିଆ ଗଛେ ତୁ ଛୋଟିଆ ଫୁଲ
ସଂସାରରେ ତୋର ନାହିଁ ତ ମୂଲ ।
ଶୀତରେ ଫୁଟେ ମୁଁ ଭଳି କି ଭଳି
କଅଁଳ ଖରାରେ ଉଠଇ ଝଳି ।'



ସବୁ ଶୁଣି ସାରି କହିଲା ମଲ୍ଲି
'ତୁଚ୍ଛାରେ କାହିଁକି କରୁଛୁ କଳି ।
ଅତର ପରିକା ବାସନା ମୋର
ତୋଳି ନେଇ ମୋତେ ଗଜରା କର ।
କଣ୍ଟାରେ ଭରିଛି ତୋହରି ଦେହ
ଛୋଟ ପିଲାମାନେ କରନ୍ତି ହେୟ ।
ସାଜିଦିଏ ମୁହିଁ କୁଆଁରୀ ଗଭା
ସୁବାସରେ ମୋର ସଭିଏଁ କାବା ।
ଯତନ ଚାହୁଁ ତୁ କାହିଁରେ କେତେ
ବିନା ଯତନରେ ବଢେ ମୁଁ ସତେ ।
ମୁଁ ଯାଇ କହୁନି କିଛି ତ ତତେ
କାହିଁକି ଆସିକି ବାଛୁଚୁ ମତେ ।

# ଉଡାଣ

ଟିକି ଚଢେଇଟି କେଜାଣି କାହିଁକି
ଉଡିବା ପାଇଁକି ଡରିଲା
ମାଆ ଚଢେଇଟି କେତେ ଭଳି ତାକୁ
ବୁଝାଇ ଶେଷକୁ ହାରିଲା ।
ପର ଦେଖ୍ ତୋର କଅଁଳି ଗଲାଣି
ଉଡି ତୁ ପାଇବୁ ଧନରେ
କହିଥିଲା ମାଆ, କେବଳ ସାହସ
ଦରକାର ଟିକେ ମନରେ ।
ଆ' ମୋ ସାଥିରେ ନେଇଯିବି ତତେ
କେତେ ରାଇଜ ତୁ ଦେଖିବୁ
ସାଙ୍ଗ ସାଥି ମେଳେ ମଉଜ କରିବୁ
ନୂଆ ନୂଆ କଥା ଶିଖିବୁ ।
ବସାରୁ ତଳକୁ ଅନାଇଲା ଟିକି
କଥା ଶୁଣିଲାନି ମାଆର
ଥଣ୍ଟରେ ଆଣିକି କୁନି ଚଢେଇକୁ
ମାଆ ଦେଇଥିଲା ଆହାର ।





ଦିନକର କଥା, ଏକା ଥିଲା ଟିକି
ଆସିଗଲା ଝଡ ବତାସ
ଭୟ ପାଇ ଟିକି ଚିଁ, ଚିଁ କଲା
ହୋଇଯାଇ ପୂରା ହତାଶ ।
ନୀଡଟି ଭାଙ୍ଗିଲା, ପଡିଯିବ ଭାବି
ଟିକି ଦେଲା ଡେଣା ମେଲାଇ
ନିମିଷଟାକରେ ଗଗନେ ଉଡିଲା
ପଙ୍ଖକୁ ହଲାଇ ହଲାଇ ।
ବରଷା କମିଲା, ମାଆ ଫେରିଥିଲା
ଚିନ୍ତା କରି ଟିକି ସକାଶେ
ଉଞ୍ଚରେ ଥାଇକି ଟିକି କହିଥିଲା
'ଦେଖ ମାଆ ଉଡେ ମୁଁ ଆକାଶେ' ।

# ଗୁଡ଼ି



ମନହୁଏ ମୁଁ ହୁଅନ୍ତି ଗୁଡି
ବେଲୁନ୍ ପରି ଯାଆନ୍ତି ଉଡି ।
ନଟେଇ ସୂତା ଧରନ୍ତେ ଭାଇ
ଉଠନ୍ତି ମୁହିଁ ଆକାଶେ ଯାଇ ।
ଆକାଶ ସାରା ଅନେକ ପକ୍ଷୀ
ଉଡନ୍ତି ତାଙ୍କୁ ଦୂରରେ ରଖି ।
ପବନ ସାଥେ ଖେଳନ୍ତି ଖେଳ
ଦେଖନ୍ତେ ତଳୁ ପିଲାଙ୍କ ଦଳ ।

ଦେଖନ୍ତି ଦୂରୁ ଆମରି ଘର
ଉଡିଉଡିକା ନଥାଇ ଡର ।
କ୍ରେତେ ସମୟ ଉଡେଇ ସାରି
ନଟେଇ ଯେବେ ଲାଗନ୍ତା ଭାରି ।
ସୂତାକୁ ଟାଣି ଆଣନ୍ତେ ଭାଇ
କହନ୍ତି "ଏବେ ଯିବି ମୁଁ ନାହିଁ" ।
କଟିଲେ କେବେ ପତଳା ଡୋର
ଧାଆନ୍ତେ ପିଲେ ପଛରେ ମୋର ।
ହୁଅନ୍ତି ତା'ର ଧରନ୍ତା ଯିଏ
ଉଡାନ୍ତା ମତେ ଆକାଶେ ସିଏ ।

# ଗୁଡ଼ି



ମନହୁଏ ମୁଁ ହୁଅନ୍ତି ଗୁଡି
ବେଲୁନ୍ ପରି ଯାଆନ୍ତି ଉଡି ।
ନଟେଇ ସୂତା ଧରନ୍ତେ ଭାଇ
ଉଠନ୍ତି ମୁହିଁ ଆକାଶେ ଯାଇ ।
ଆକାଶ ସାରା ଅନେକ ପକ୍ଷୀ
ଉଡନ୍ତି ତାଙ୍କୁ ଦୂରରେ ରଖି ।
ପବନ ସାଥେ ଖେଳନ୍ତି ଖେଳ
ଦେଖନ୍ତେ ତଳୁ ପିଲାଙ୍କ ଦଳ ।

ଦେଖନ୍ତି ଦୂରୁ ଆମରି ଘର
ଉଡିଉଡିକା ନଥାଇ ଡର ।
କେତେ ସମୟ ଉଡେଇ ସାରି
ନଟେଇ ଯେବେ ଲାଗନ୍ତା ଭାରି ।
ସୂତାକୁ ଟାଣି ଆଣନ୍ତେ ଭାଇ
କହନ୍ତି "ଏବେ ଯିବି ମୁଁ ନାହିଁ' ।
କଟିଲେ କେବେ ପତଳା ଡୋର
ଧାଆନ୍ତେ ପିଲେ ପଛରେ ମୋର ।
ହୁଅନ୍ତି ତା'ର ଧରନ୍ତା ଯିଏ
ଉଡାନ୍ତା ମତେ ଆକାଶେ ସିଏ ।

# ରଜ

ବରଷ କେ ଥରେ ଆସିଛି ରଜ
ଝିଅମାନେ ସବୁ ହେଲେଣି ସଜ ।
ପାନର ରସରେ ନାଲିଆ ପାଟି
ପାଦରେ ନ ଲାଗେ ଟିକିଏ ମାଟି ।
ଏଇ ତିନିଦିନ ଖେଳିବେ ଦୋଳି
ପାଠ ପଢାରେ ତ ଲାଗିଲା ଡୋରି ।
ଭାତ ଖାଇ ଖାଇ ଲାଗଇ ଚିଟା
ବୁଲି ବୁଲି ଏବେ ଖାଇବେ ପିଠା ।



ପୋଡପିଠା ପୁଣି ମଣ୍ଡା ଆରିସା
ଖାଇବାକୁ ଦେବେ ସାଇ ପଡିଶା ।
ଜାମୁ ଗଛେ ବନ୍ଧା ହୋଇଛି ଦୋଳି
ଦୋଳି ଖେଳିସାରି ଖାଇବେ କୋଳି ।
ଡାଳେ ହୋଇଅଛି ଦଉଡି ବେଢା
ଦୋଳିରେ ପଡିଛି ଚଉଡା ପିଢା ।
ଦୋଳିରେ ହେବି ମୁଁ ଉପର ତଳ
ପବନ ସାଥିରେ ଦେବି ମୁଁ ତାଳ
ଦୋଳିରେ ବସିଲେ ଲାଗଇ ମଜା
ଆକାଶେ ଉଡେ ମୁଁ ସତେ ବା ରଜା ।

# ଲାଲି

କୁନି ଭଉଣୀ ସିଏ ଯେ ମୋର
ନାଆଁଟି ତାର ଲାଲି
ନଥିଲେ କେହି ଗୋଟାଏ ଢଲୁ
ଖାଏ ସେ ମାଟି, ବାଲି ।
ଗୁଲୁଗୁଲିଆ କଅଁଳ ମୁହଁ
ଠୁକୁ ଠୁକୁ ତା ଚାଲି
ମାଆଙ୍କ କୋଳେ ଖୁସିରେ ରହେ
ପିନ୍ଧଇ ଜାମା ନାଲି ।
ପିଠିରେ ମୋର ହୁଅଇ ଲାଉ
ଜାବୁଡି ଧରି ଚୁଟି
କ୍ଷୀର ଭାତକୁ ଖାଏନା ଜମା
ଖାଇବ କହେ ରୁଟି ।





ରାତି ଅଧରେ ନିଦରୁ ଉଠି
କହିବ ଖେଳ ସାଥେ
ବାପାବୋଉଙ୍କୁ ଉଠାଇ ଦେଇ
ରାତିଟା ସାରା ମାତେ ।
ବହି ପତର ଚିରଇ ମୋର
ଢାଳଇ ପୁଣି କ୍ଷୀର
ଧମକାଇଲେ ଯାଏ ସେ ଡରି
ନୟନୁ ବହେ ନୀର ।
ଯେତେ ଚଗଲୀ ହେଉ ବି ଲାଲି
ମୋହର ସିଏ ପ୍ରାଣ
ଲାଲିକୁ ତୁମେ କୁହନି କିଛି
ତୁମକୁ ମୋ'ରାଣ ।

# ଗଣେଶ ପୂଜା



ଆଜି ତ ଅଟଇ ଗଣେଶ ପୂଜା
ଖାଇବି ଖୁସିରେ ଉଖୁଡ଼ା ଖଜା ।
ସକାଳୁ ଉଠିକି ଗାଧୁଆ ସାରି
ଫୁଲ ତୋଳିବାକୁ ଯିବି ମୁଁ ବାରି ।
ସଜଫୁଲ ତୋଳି ଗୁନ୍ଥିବି ମାଳ
ଆଣିବି କଅଁଳ ଆମ୍ବର ଡାଳ ।

ବସିବେ ଠାକୁର ବିମାନେ ପରା
ଭୋଗ ବାଢ଼ିଦେବି ସଜାଇ ସରା
ପୂଜିବି ମୁଁ ତାଙ୍କୁ ଜୁହାର କରି
ହାତରେ କୁସୁମ ଅଂଜଳି ଧରି ।
ପ୍ରସନ୍ନ ହୋଇଲେ ଦେବେ ସେ ପାଠ
ବୋଲାଇବି ମୁହିଁ ବୁଦ୍ଧିଆ ଚାଟ ।
ବାଧା ବିଘ୍ନ ମୋର ହୋଇବ ଦୂର
ଗାଇବି ଭଜନ କରି ମୁଁ ସୁର ।

# ନୀଳ

ଉଡୁଛନ୍ତି ଭଳି ଭଳି
ପକ୍ଷୀ ନୀଳ ଆକାଶେ
କୁନି ଭାଇ ଅଳି କରେ
ନୀଳ ସ୍ୟାହି ସକାଶେ ।
ନୀଳରଂଗ ବିନା କେବେ
ଇନ୍ଦ୍ରଧନୁ ହେବକି
ଆଣିଛି ମୁଁ ଧଳା ଲୁଗା
ନୀଳ ଟିକେ ଦେବକି ?



ନୀଳନଈ ବହିଥାଏ
ଦୂର ଦେଶ ମିଶରେ
ଦେହ ନୀଳ ପଡିଯାଏ
ନାଗ ସାପ ବିଷରେ ।
ଆମ ଗାଆଁ ଗଡିଆରେ
ନୀଳ କଇଁ ଫୁଟଇ ।
ନୀଳଚକ୍ର ଦେଖିବାକୁ
ଯାଉଅଛି ବାଟୋଇ ।

ନୀଳ ତିମି ବାସ କରେ
ଦୂର ନୀଳ ସାଗରେ ।
ନେଳିଆ ମୟୂର ନାଚେ
ଦେଖ କେଡେ ବାଗରେ ।
ସାଜିଛନ୍ତି ନୀଳକଣ୍ଠ
ଶିବ ବିଷ ପିଇକି
ନୀଳ ଭଦଭଦଳିଆ
କେଳା ଯାଏ ନେଇକି ।



ସୁନୀଳ ବରଣ ଅଟେ
କୃଷ୍ଣଙ୍କର ଶରୀର
ସପନରେ ଦେଖିଥିଲି
ନୀଳ ଆଖି ପରୀର ।
ନେଳିଆ ଚଷମା ଲୋଡା
ଖରା ଦିନ କାଳରେ
ନେଳିଆ ଅପରାଜିତା
ମାଡିଅଛି ଚାଳରେ ।

# ପୁରୀ ଯାତ୍ରା



କିଣିଥିଲେ ଭାଇ ନୂଆ ମାରୁତି
ଯାଇଥିଲୁ ପୁରୀ ସଭିଏଁ ଜୁଟି ।
ବାଟରେ ପିଇଲୁ ପଇଡ ପାଣି
ତାଳସଜ ଦେଲେ ଭାଉଜ ଆଣି ।
ଦୂରରୁ ଦିଶିଲା ମନ୍ଦିର ବାନା
କହିଲେ ଭାଇନା 'ସିଆଡେ ଅନା' ।
ସଡକେ ଭେଟିଲୁ ବାଟ ମଙ୍ଗଳା
ପାରିହେଲୁ ପୁଣି ଅଠର ନଳା ।
ହାତ ପାଦ ଧୋଇ ମନ୍ଦିର ଗଲୁ
ଗରୁଡ ସ୍ତମ୍ଭକୁ ଜୁହାର କଲୁ ।
ଶୁଖିଲା ଭୋଗକୁ ଟୋପିରେ ରଖି
ଗଲୁ ଆମେ କଳା ଠାକୁର ଦେଖି ।



ଠାକୁରଙ୍କ ଆଗେ ଜାଳିଲୁ ଦୀପ
ସାଥିରେ କର୍ପୂର ଆହୁରି ଧୂପ ।
ଆନନ୍ଦ ବଜାର ଦେଖିଲୁ ଯାଇ
ସାନବଡ ଭେଦ ସେଠାରେ ନାହିଁ ।
ଚଟାଣେ ବସିକି ଖାଇଲୁ ଅନ୍ନ
ଖୁସି ହେଲା ମୋର ଭକତ ମନ ।
ସଂଜରେ ବସିଲୁ ସାଗର କୂଳେ
ଫେରିବାଲା ଯେତେ ଆସିଲେ ବଳେ ।
ଭାଉଜ କିଣିଲେ ଶଙ୍ଖର ଚୂଡି
ଆମେ ଖାଇଥିଲୁ ମସଲା ମୁଡି ।
ଲେଉଟାଣି ବାଟେ ରାବିଡି ଖାଇ
ଫେରିଲୁ ମଜାରେ ଭଜନ ଗାଇ ।

# ଏକ ରୁ ଦଶ



ଏଡେ ବଡ ଆକାଶରେ ଏକ ଅଟେ ସୂରୁଜ
ଭୋରବେଳା ବିଞ୍ଚିଦିଏ ନାଲି ନାଲି ମୁରୁଜ ।
ମଣିଷର ଦୁଇ ଆଖି ଆହା କେଡେ ଉଜ୍ଜ୍ୱଳ
ଗେହ୍ଲା ନାତି ନୟନରେ ଆଈ ଭରେ କଜଳ ।
ଚାଲ ଯିବା ଦେଖିବାକୁ ରଥେ ତିନି ଠାକୁର
ହାତେ ଧରି ନେଇଯିବା ଫୁଲମାଳ ବକୁଳ ।
ଜାଣିଛ କି ପିଲେ ଅଛି ଚାରିବେଦ ଆମର
ଅଜା କାଲି କହିଥିଲେ କଥା ଚାରି ଧାମର ।
ପୂଜା ପାଇଁ ସଜ କରି ଆଣ ପଞ୍ଚାମୃତକୁ
ମିଶାଇକି କ୍ଷୀର, ଦହି, ଗୁଡ, ମଧୁ, ଘୃତକୁ ।



ଛଅ ଋତୁ ମିଶିଗଲେ ପୂରିଯାଏ ବରଷ
ଋତୁରାଜ ବସନ୍ତଟି ସବୁଠାରୁ ସରସ ।
ଦେଖ ଖେଳେ ସାତରଂଗା ଇନ୍ଦ୍ରଧନୁ ଆକାଶେ
ସାତ ସ୍ୱର ସାଧୁଅଛି ମୀନା ଗୀତ ସକାଶେ ।
ଅଷ୍ଟବକ୍ର ଋଷି ଥିଲେ ବିଦୁଷ ଓ ଜ୍ଞାନୀ ରେ
ମହାଷ୍ଟମୀ ପୂଜା ଆଜି କରୁଛନ୍ତି ନାନୀ ରେ ।
ବୁଲୁଛନ୍ତି ନବଗ୍ରହ ସୂରୁଯକୁ ବେଢେଇ
ନବରତ୍ନ ଖଞ୍ଜି ମତେ ମୁଦି ଦିଅ ଗଢେଇ ।
ଦଶାନନ କରିଥିଲା ସୀତା ଦେବୀ ହରଣ
ଦଶରାରେ ଦୁରୁଗାଙ୍କୁ କର ପିଲେ ବରଣ ।

# କଣ୍ଢେଇ ବାହାଘର

ଆଜି ମୋ କଣ୍ଢେଇ ବାହାଘର
ସକାଳୁ ଆଜି ମୁଁ ତରତର ।
ଗଲାଣି ସମୟ କେତେ ଗଡି
ଆସ କୁନା, ମୁନା, ଗୁଡ୍ଡା, ଗୁଡ୍ଡି ।
ପହଞ୍ଚିବ ପରା ବର ଏବେ
କାମ ପଡିଅଛି ହେବ କେବେ ।
ବର ଆସିଲାଣି ଶୁଭେ ବାଜା
କଣ୍ଢେଇ ଝିଅକୁ ବେଗି ସଜା ।
ଗଳାରେ ପିନ୍ଧାଅ ମାଳିହାର
ସୁନ୍ଦାରେ ଦିଅ ତା ନାଲିଗାର ।



ଦୀପ ଜାଳି ଦିଅ, ଫୁଟା ବାଣ
ବନ୍ଦାପନା କରି ବର ଆଣ ।
ବନ୍ଧୁ ବାନ୍ଧବଙ୍କୁ ବସା ଆଣି
ଦିଅ ସେମାନଙ୍କୁ ଚିନି ପାଣି ।
ଟିନା, ମୀନା ଦିଅ ହୁଳହୁଳି
ସମୁଦୁଣୀ ହେବେ କୋଳାକୋଳି ।
ଜୋଇଁ ବାବୁ ମୋର ଶୁଣ କଥା
କହୁଛି ତୁମକୁ ନୋଇଁ ମଥା ।
କଣ୍ଢେଇ ଦେଲି ମୁଁ ତୁମ ହାତେ
ରଖିବ ଜୀବନ ସାରା ସାଥେ ।

# ମୁନାର ଜେଜେମା

ଜେଜେ ମା' ଠାରୁ ଦଶଟଙ୍କା ନେଇ
ମୁନା ଦେଖି ଗଲା ଯାତରା
ପେଡିରେ କେବେଠୁ ସାଇତି ଥିଲା ସେ
ଟଙ୍କା ଦିଶୁଥିଲା କୋତରା ।
ସାଂଗସାଥି ମେଳେ ପହଞ୍ଚିଲା ଯାଇ
ଗୁଡିଆ ଦୋକାନ ପାଖରେ
ପିଲାଙ୍କ ହାତକୁ ବୁନ୍ଦିଆ ବଢାଇ
କହିଲା ଦୋକାନୀ 'ଚାଖରେ' ।



ଟାକରା ଫୁଟାଇ ମିଠୁ କିଣିନେଲା
ଆଠ ଟଙ୍କା ଦେଇ ମିଠେଇ
ଜେଜେମାଆ ପାଇଁ କି ନେବ ଭାବିକି
ମୁନା ତ ଚାହିଁଲା ନିଠେଇ ।
ଆଗେ ଆଗେ ଯାଇ ନଟି କଣିଥିଲା
ମାଟିରେ ତିଆରି ସିଂହଟି
ମୁନାର ଆଖିରେ ଭାସି ଉଠୁଥିଲା
ଜେଜେମା ଶୁଖିଲା ମୁହଁଟି ।

ଖେଳନା ଦୋକାନୁ କିଣିଥିଲା କାହ୍ନୁ
କାଳିଆ ରଂଗର ବନ୍ଧୁକ
କହିଥିଲା ତାକୁ ଲୁଚାଇ ରଖିବ
ଘରେ ଅଛି ଯେଉଁ ସିନ୍ଦୁକ ।
ଜେଜେ ମାଆ କଥା ହେଜି ମୁନା ମନେ
ଲୁହାର ଚିମୁଟା କିଣିଲା
ରୁଟି ସେକାବେଳେ ଜେଜାମାଙ୍କ ହାତ
ଆଉ ପୋଡିବନି ଜାଣିଲା ।
ଯାତରାରୁ ଫେରି ଚିମୁଟାକୁ ନେଇ
ଜେଜେମାଙ୍କୁ ଦେଲା ଧରାଇ
ଜେଜେମା ମୁନାକୁ ଅନାଇଁ ରହିଲେ
ନୟନୁ ଲୋତକ ଝରାଇ ।



କହିଲେ 'ଜେଜେମା ଖାଇବୁ ବୋଲିକି
ଟଙ୍କା ଦେଇଥିଲି ଧନରେ
ସବୁ ପିଲା କିଣି ଖାଉଥିଲା ବେଳେ
ଶୁଖାଇ ଥିବୁ ତ ମନରେ' ।
ବୁକୁରେ ମୁନାକୁ ଜଡାଇ ଧରିକି
ଜେଜେମା ଉଠିଲେ ବାହୁନି
ଜେଜେ ମା ନ ହସି କାହିଁକି କାନ୍ଦିଲେ
ମୁନା ତ ଉତ୍ତର ପାଉନି ।

# ଗଛର ଅଳି

ସପନରେ ଗଛ କହିଲା ମତେ
'ତୁମ ଉପକାର କରେ ମୁଁ କେତେ ।
ନିଇତି ନେଉଛ ମୋହରି କାଠ
କାଗଜ କରିକି ପଢୁଛ ପାଠ ।
ମେଜ ଓ ଚଉକି କେଉଁଠୁ ଆସେ ?
ମୁହିଁ ଥିଲେ ଧରା ଫୁଲରେ ବାସେ ।
ରୋଷେଇ ପାଇଁକି ଦିଏ ମୁଁ ଜାଳ
କାଟିଦେଲେ ମତେ ଶୁଖଇ ନାଳ ।



ନିଶ୍ୱାସ ନେଉଛ ମୋହରି ପାଇଁ
ଋଣ ମୋର ଶୁଝି ପାରିବ ନାହିଁ ।
ଫଳମୂଳ ଆଦି ତୁମକୁ ଦିଏ
ତୁମଠାରୁ କୁହ କଅଣ ନିଏ ?
ନଥିଲେ ମୁଁ ଧରା ଯିବଇ ଜଳି
କାଟନାହିଁ ମତେ ଏତିକି ଅଳି ।
ନେହୁରା ହେଲା ସେ ଏ ସବୁ କହି
ଶୁଣିଲି ତା କଥା ଟିକିଏ ରହି ।
କହିଲି ଗଛକୁ 'ମୋ ଆଡେ ଅନା
ଗଛ ଯେ କାଟିବ କରିବି ମନା' ।

# ମଣିଷର ସଖା

ବାହାରିଲେ ଅଜା ଫୁଲ ବଗିଚାକୁ
ହାତରେ ଧରିକି କତୁରୀ
ମଥା ଟେକି ସିଏ ସଳଖ ଚାଲନ୍ତି
ବୟସ ଯଦିଓ ସତୁରି ।
ବଗିଚାଟା ସାରା ଅସନା ଦିଶୁଛି
ଡାଳ ଓ ପତର ନଇଁଚି
କାଟିକୁଟି ତାକୁ ସଫା କରିଦେବେ
ଚଳାଇ ଧାରୁଆ କଇଁଚି ।
ଅଜା ପଛେ ଆସି ଟିକି ନାତି ମୁନା
କହିଲା "ନାହିଁକି ଧାରଣା
ଗଛ ପରା ଆମ ମଣିଷର ସଖା
ଅଜା ତୁମେ ବଡ ମାରଣା ।



ଅମ୍ଳଜାନ ଦିଏ, ବରଷା ବି କରେ
ଦିଅଇ ଯେତକ ଆହାର
ଜାଣିନାହଁ ଯଦି ବହି ଖୋଲି ଦେଖ
ଦିଅନା ଗଛକୁ ପାହାର ।
ଗଛ କାଟିବାକୁ ଚରଣରେ ପଡି
କରୁଛି ତୁମକୁ ବାରଣ ।
ପାର ଯଦି ତୁମେ ଚାରାଟିଏ ପୋତ
କରିବେ ସଭିଏଁ ସ୍ମରଣ" ।
ସବୁ ଶୁଣି ସାରି ହସି ଦେଇ ମାଆ
ଖୁସିରେ କହିଲେ "ମୁନାରେ
ବାଳୁତ କାଳରୁ କେତେ କଥା ଜାଣୁ
ଧନ ମୋର ଅତି ସୁନାରେ" ।

# କୁହୁକ ମାଳ

କୁହୁକ ମାଳଟେ ମଠ ନନା ଦେଇ
କହିଲେ 'ଶୁଣରେ ରତନ
ଭଲ ପାଇ ତତେ ଉପହାର ଦେଲି
ରଖିବୁ କରିକି ଯତନ ।
ମାଳକୁ ଗଳାରେ ପକାଇବୁ ଯେବେ
ହୋଇଯିବୁ ପୂରା ଉଭାନ
ଦେଖି ପାରିବେନି କେହି ତତେ ଆଉ
ପିଲା ହେଉ ଅବା ଯବାନ' ।



ହାରକୁ ବେକରେ ଗଳାଇ ଖୁସିରେ
ଚାଲିଗଲି ଖେଳ ପଡିଆ
ଦୁଇଦଳ ହୋଇ ଖେଳୁଥିଲେ ପିଲେ
କ୍ରିକେଟ ଖେଳ ସେ ବଢିଆ ।
ଜିତାଇବା ପାଇଁ ଆମରି ଦଳକୁ
ପଡିଆ ଭିତରେ ପଶିଲି
କେହି ମତେ ଦେଖି ପାରୁ ଯେ ନାହାନ୍ତି
ଜାଣିକି ଯେତକ ହସିଲି ।

ତାଙ୍କର ବଲ୍‌କୁ ହାତେ ଅଟକାଇ
ଦେଲି ମୁଁ ତାହାଙ୍କୁ ଠକି ତ
ଆମଦଳ ଯେବେ ଜିତିଗଲା, ସେବେ
ସଭିଏଁ ହୋଇଲେ ଚକିତ ।



ଅତି ଆନନ୍ଦରେ ତଳେ ଗଡିଗଲି
ମାଳ ହୋଇଗଲା ବାହାର
ଗୋଡାଇଲେ ମତେ ଆରଦଳ ପିଲା
ପିଠିରେ ଦେବାକୁ ପାହାର ।
ନିଦ ଭାଙ୍ଗିଗଲା ଭୟରେ, ଦେଖିଲି
ବେକରେ ନାହିଁ ସେ ହାର ତ
ମନେ ପଡିଗଲା ଦେଖିଥିଲି କାଲି
ସିନେମା 'ଶ୍ରୀମାନ ଭାରତ' ।

ଗୀତା ତ୍ରିପାଠୀ ବୃତ୍ତିରେ ଡାକ୍ତର, କିନ୍ତୁ ରୁଚି ରଖନ୍ତି କ୍ଷୁଦ୍ରଗଳ୍ପ ଓ ଶିଶୁ କବିତା ରଚନାରେ । ତାଙ୍କ ଶିଶୁ କବିତା ଗୁଡ଼ିକର ଛନ୍ଦ ସରଳ ଓ ଭାଷା ସୁବୋଧ । ଉପଧା ମିଳନରେ ଲେଖିକାଙ୍କର ପାରଦର୍ଶିତା ସର୍ବୋପରି ପ୍ରଶଂସନୀୟ । କଳ୍ପନାପ୍ରବଣ ଶିଶୁମାନଙ୍କୁ ଆଖି ଆଗରେ ରଖି ଲେଖିକା ବିଷୟବସ୍ତୁର ଚୟନ ମଧ୍ୟ କରନ୍ତି ।

ଡ଼ାକ୍ତର ତ୍ରିପାଠୀ ବିଶିଷ୍ଟ ଭାଷାତତ୍ତ୍ୱବିତ୍ ସ୍ୱର୍ଗତ ଡ଼କ୍ଟର କୁଞ୍ଜବିହାରୀ ତ୍ରିପାଠୀଙ୍କର କନ୍ୟା ।

**ପ୍ରକାଶିତ ପୁସ୍ତକ :**

**ଗଳ୍ପ ସଂକଳନ :**

୧) ଅପରାହ୍ନର ଅବଧାନ

୨) ରୂପାନ୍ତରିତ ରୂପା

୩) ଆକାଶର ରଙ୍ଗ

**ଶିଶୁ କବିତା ସଂକଳନ :**

୧) ଅଜାଙ୍କ ନାଟ

୨) ସପନ ରାଇଜ